# ମହାରାଜା
# କୃଷ୍ଣ ଚନ୍ଦ୍ର ଗଜପତି



ସ୍ୱତନ୍ତ୍ର ଓଡ଼ିଶାର ନିର୍ମାତା

# ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ

ଲେଖକ :

ଭଗୀରଥୀ ନେପାକ

ପ୍ରକାଶକ :

ଶ୍ରୀ ନବ ପ୍ରକାଶନ

ମିଶନ୍ ରୋଡ଼, କଟକ-୧

# ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ

ଲେଖକ :

ଭଗୀରଥି ନେପାକ

ପ୍ରକାଶକ :

ଆନନ୍ଦ ପ୍ରକାଶନ
ମିଶନ ରୋଡ୍, କଟକ-୧

ତୃତୀୟ ପ୍ରକାଶନ : ୧୯୯୫

ମୁଦ୍ରଣ :

ଓଡ଼ିଶା ପ୍ରିଣ୍ଟିଂ ୱାର୍କସ୍
ମିଶନ୍ ରୋଡ୍, କଟକ-୧

ମୂଲ୍ୟ— ଟ ୭-୦୦
(ଛଅ ଟଙ୍କା ମାତ୍ର)

# ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ

ଓଡ଼ିଶାରେ ଅତୀତରେ କେତେ ରାଜା ମହାରାଜା ଜନ୍ମ ଗ୍ରହଣ କରି ସୁଖ ସମ୍ଭୋଗରେ ରାଜ୍ୟ ଭୋଗ କରି ଚାଲି ଯାଇଛନ୍ତି, ତାର ହିସାବ ନାହିଁ । ରାଜା ମହାରାଜା ହେବାର ଯୋଗ୍ୟତା ଥାଉ ବା ନଥାଉ, କେବଳ ରାଜପୁତ୍ର ଭାବରେ ଜନ୍ମ ଗ୍ରହଣ କରି ରାଜ୍ୟର ପ୍ରଜାମାନଙ୍କ ଧନରେ ଅପବ୍ୟୟ କରି ଜୀବନ ଅତିବାହିତ କରି କାଳଗର୍ଭରେ ନିଜକୁ ଲୁଚାଇ ଦେଇଛନ୍ତି । ଏବେ ଆଉ ରାଜପଦ ନାହିଁ କି ରାଜ୍ୟ ନାହିଁ । ଇତିହାସ ସେହି ତଥା କଥିତ ରାଜା ମହାରାଜାଙ୍କ କଥା ଭୁଲି ଯାଇଛି । କିନ୍ତୁ ଯେଉଁମାନେ ଦେଶ ଓ ଜାତିର ମଙ୍ଗଳ ନିମନ୍ତେ ତ୍ୟାଗ ସ୍ୱୀକାର କରି କଷ୍ଟସାଧ୍ୟ କାର୍ଯ୍ୟ କରି ଯାଇଛନ୍ତି, ସେମାନଙ୍କୁ ଏ ଜାତି ଭୁଲି ପାରିବ ନାହିଁ । ପାରଳାଖେମୁଣ୍ଡିର ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଦେବ ତାଙ୍କର ଦେଶ ହିତକର କାର୍ଯ୍ୟ ପାଇଁ ଓଡ଼ିଆ ଜାତିର ଚିର ନମସ୍ୟ ହୋଇ ରହିବେ ।

ତାଙ୍କ ସମୟରେ ଓଡ଼ିଶା ନାମରେ ଭାରତରେ କୌଣସି ସ୍ୱତନ୍ତ୍ର ପ୍ରଦେଶ ନଥିଲା । ସୁଦୀର୍ଘ ଦୁଇଶହ ବର୍ଷ ଧରି ବିଶାଳ ଉତ୍କଳ ଖଣ୍ଡ ବିଖଣ୍ଡ ହୋଇ ବିଭିନ୍ନ ରାଜ୍ୟର ଅଧିକାରୀ ଅଂଶ ରୂପେ ଯୋଡ଼ି ହୋଇ ରହିଥିଲା । ଏହାର କେତେକ ଅଂଶ ମଧ୍ୟପ୍ରଦେଶରେ, କେତେକ ଅଂଶ ବଙ୍ଗଳାରେ, କେତେ ଅଂଶ ବିହାରରେ ଓ ଆଉ କେତେକ ଅଂଶ ମାନ୍ଦ୍ରାଜ ପ୍ରଦେଶ ସଙ୍ଗେ ସାମିଲ ହୋଇଥିଲା । ଓଡ଼ିଆମାନଙ୍କୁ ଭାଷା ପରିବର୍ତ୍ତେ ହିନ୍ଦୀ, ବଙ୍ଗଳା ଓ ତେଲୁଗୁ ଭାଷା ଶିକ୍ଷା କରିବାକୁ ବାଧ୍ୟ କରା ଯାଉଥିଲା ।'

ଏହିପରି ଦୁର୍ଦ୍ଦିନରେ ଓଡ଼ିଶାରେ କେତେଜଣ ଯୋଗ-ଜନ୍ମା ମହାପୁରୁଷ ଓଡ଼ିଆ ଭାଷା ଭାଷୀ ଅଞ୍ଚଳର ଏକତ୍ରୀକରଣ ତଥା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ତତ୍‌କାଳୀନ ଇଂରେଜ ସରକାରଙ୍କ ଆଗରେ ଦୃଢ଼ ଦାବୀ ଉପସ୍ଥାପନ କରିଥିଲେ । ଏହି ଦାବୀ ପୂରଣ ପାଇଁ ପ୍ରତିଜ୍ଞାବଦ୍ଧ ହୋଇ ସେମାନେ ଅଣ୍ଟାଭିଡ଼ି ଲାଗିପଡ଼ିଥିଲେ । ଏହି ଯୋଗଜନ୍ମା ମହାପୁରୁଷମାନଙ୍କ ମଧ୍ୟରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ଅଗ୍ରଗଣ୍ୟ ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ପାରଳାର ମହାରାଜା ଥିଲେ । ସେତେବେଳେ ତାଙ୍କ ରାଜ୍ୟ ମାନ୍ଦ୍ରାଜ ପ୍ରଦେଶରେ ଅନ୍ତର୍ଭୁକ୍ତ ଥିଲା । ସେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ଦୃଢ଼ ଦାବୀ ଉପସ୍ଥାପନ କରିବା ନିମନ୍ତେ ୧୯୨୯ ମସିହାରେ ଲଣ୍ଡନର ଗୋଲଟେବୁଲ ବୈଠକରେ ଯୋଗଦାନ କରିଥିଲେ । ତାଙ୍କର ଦୃଢ଼ ଦାବୀ ଫଳରେ ଖଣ୍ଡ ବିଖଣ୍ଡିତ ଓଡ଼ିଆ ଅଧ୍ୟୁଷିତ ଅଞ୍ଚଳ ଏକତ୍ରିତ ହେଲା ଓ ୧୯୩୬ ମସିହା ଏପ୍ରିଲ ପହିଲା ତାରିଖ ଦିନ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହେଲା ।

ପାରଳାର ମହାରାଜା ଗଜପତି କୃଷ୍ଣଚନ୍ଦ୍ର ଦେବ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ପ୍ରଥମ ପ୍ରଧାନ (ମୁଖ୍ୟ) ମନ୍ତ୍ରୀ ପଦ ଗ୍ରହଣ କରିଥିଲେ ।

ପ୍ରାଚୀନ ଐତିହ୍ୟ ଓ ପରଂପରା ସମ୍ପନ୍ନ ପାରଳା-ଖେମଣ୍ଡିର ଗଙ୍ଗବଂଶୀ ରାଜା ଶ୍ରୀକୃଷ୍ଣଚନ୍ଦ୍ର ଗଜପତି ଦେବ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ନିର୍ମାତା ତଥା ପ୍ରଥମ ପ୍ରଧାନମନ୍ତ୍ରୀ ଭାବରେ ଓଡ଼ିଶାର ପୁରପଲ୍ଲୀରେ ସୁପରିଚିତ । ତାହାଙ୍କ

ବ୍ୟକ୍ତିତ୍ୱ, ବଳିଷ୍ଠ ନେତୃତ୍ୱ ଏବଂ ପ୍ରତ୍ୟୁତ୍ପନ୍ନମତିତା ଯୋଗୁ ଓଡ଼ିଆ ଜାତିର ସମ୍ମାନ ବଢାଇ ଚାହିଁଲେ । ଓଡ଼ିଶା ଦେଶ ଓ ଓଡ଼ିଆ ଜାତିର ଅସ୍ତିତ୍ୱ ଥିବା ପର୍ଯ୍ୟନ୍ତ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ଚିର ସ୍ମରଣୀୟ ହୋଇ ରହିବେ, ଏଥିରେ ସନ୍ଦେହ ନାହିଁ ।

## ❀ କୃଷ୍ଣଚନ୍ଦ୍ର ଗଜପତିଙ୍କ ଜନ୍ମ

୧୮୯୨ ମସିହା ଏପ୍ରିଲ ମାସ ୨୬ ତାରିଖ ଦିନ ମହାମନା କୃଷ୍ଣଚନ୍ଦ୍ର ଦେବ ମହାରାଣୀ ବିଷ୍ଣୁପ୍ରିୟା ଦେବୀଙ୍କ ଗର୍ଭରୁ ଜନ୍ମ ଗ୍ରହଣ କରିଥିଲେ । ସେ ଦିନ ଥିଲା ଅମାବାସ୍ୟା । ଅମାବାସ୍ୟା ରାତିରେ ଜନ୍ମ ଗ୍ରହଣ କରି ସେ ରାଜନଅରକୁ ଆଲୋକିତ କରିଥିଲେ । ପାରଳା ଖେମୁଣ୍ଡି ରାଜ ପ୍ରସାଦରେ ଆନନ୍ଦର ଜୁଆର ଖେଳି ଯାଇଥିଲା ।

କୃଷ୍ଣଚନ୍ଦ୍ର ଦେବଙ୍କ ପିତାଥିଲେ ଗୌରଚନ୍ଦ୍ର ଗଜପତି ଦେବ । କୃଷ୍ଣଚନ୍ଦ୍ରଙ୍କୁ ମାତ୍ର ୧୩ ବର୍ଷ ବୟସ ହୋଇଥିଲା ବେଳେ ତାଙ୍କ ପିତା ଗୌରଚନ୍ଦ୍ର ୧୯୦୫ ମସିହାରେ ମୃତ୍ୟୁ ବରଣ କରିଥିଲେ ।

## ❀ ମାତା ବିଷ୍ଣୁପ୍ରିୟା

କୃଷ୍ଣଚନ୍ଦ୍ରଙ୍କ ମାତା ବିଷ୍ଣୁପ୍ରିୟା ଘୁମୁସର ରାଜ୍ୟରେ ଏକ ମଧ୍ୟବିତ୍ତ ସାମନ୍ତ ପରିବାରର କନ୍ୟା ଥିଲେ । ସେ ଅତ୍ୟନ୍ତ ସ୍ନେହଶୀଳା, ଶାନ୍ତ ଓ କୃଷ୍ଣଭକ୍ତ ପରାୟଣା ନାରୀ । ସେ ପ୍ରତିଦିନ 'ଭାଗବତ' ଓ 'ମହାଭାରତ' ପାଠ କରନ୍ତି । ଏହି ପବିତ୍ର ଗ୍ରନ୍ଥମାନ ନିଜେ କେବଳ ପାଠ କରି ସନ୍ତୁଷ୍ଟ ନ ହୋଇ

ତାର ଆଦର୍ଶ ଗୀତ ଗୁଡ଼ିକ ତାଙ୍କର ସେବକା ଓ ସହଚରଣୀ-ମାନଙ୍କୁ ଶୁଣାଉଥିଲେ । ଜୀବନରେ ଭାଗବତ ଓ ମହାଭାରତର ଆଦର୍ଶ ପାଳନ କରିବା ନିମନ୍ତେ ଦୃଢ଼ ପ୍ରତିଜ୍ଞ ଥିଲେ ।

### ● ଶିଶୁ କୃଷ୍ଣଚନ୍ଦ୍ର

ଶିଶୁ କୃଷ୍ଣଚନ୍ଦ୍ର ପାରଳାଖେମୁଣ୍ଡି ରାଜ ପ୍ରାସାଦର ଜୀବନ ସଦୃଶ ଥିଲେ । ସେ ଖୁବ୍ ଆଦର ଯତ୍ନରେ ଲାଳିତ ପାଳିତ ହୋଇଥିଲେ ।

କୁହାଯାଏ କୃଷ୍ଣଭକ୍ତ ପରାୟଣା ମାତା ବିଷ୍ଣୁପ୍ରିୟା ଶ୍ରୀକୃଷ୍ଣଙ୍କ ଆଶୀର୍ବାଦରୁ ପୁତ୍ର ସନ୍ତାନ ଲାଭ କରିଥିବାରୁ ତାଙ୍କ ନାମ କୃଷ୍ଣଚନ୍ଦ୍ର ରଖିବାକୁ ପରାମର୍ଶ ଦେଇଥିଲେ ।

ଶିଶୁ କୃଷ୍ଣଚନ୍ଦ୍ର କିଛିଏ ବଡ଼ ହୋଇ ଆସିବା ପରେ ମାଆଙ୍କ କୋଳରେ ବସି ମନଯୋଗ ଦେଇ 'ମହାଭାରତ' ଶୁଣୁଥିଲେ । ମହା ଭାରତର ଘଟଣାବଳୀ ଓ ଚରିତ୍ରମାନେ ତାଙ୍କ ମନକୁ ପ୍ରଭାବିତ କରିଥିଲେ ।

### ● କୃଷ୍ଣଚନ୍ଦ୍ରଙ୍କ ବାଲ୍ୟଶିକ୍ଷା

ଯଥା ସମୟରେ ଶୁଭ ବେଳାରେ କୃଷ୍ଣଚନ୍ଦ୍ରଙ୍କ ବାଲ୍ୟ-ଶିକ୍ଷା ଆରମ୍ଭ ହେଲା । ରାଜପ୍ରସାଦର ଗୃହ ଶିକ୍ଷକ ତାଙ୍କୁ ଅକ୍ଷର ଶିକ୍ଷା ଦେଲେ । ଓଡ଼ିଶାର ତତ୍କାଳୀନ ପଣ୍ଡିତ ଓ ସାହିତ୍ୟିକ ଶ୍ୟାମ ସୁନ୍ଦର ରାଜଗୁରୁଙ୍କ ତତ୍ତ୍ୱାବଧାନରେ ସେ ଇଂରାଜୀ, ଓଡ଼ିଆ, ଇତିହାସ, ଭୂଗୋଳ, ଅଙ୍କ ଆଦି ବିଷୟରେ ଶିକ୍ଷା ଲାଭ କରିବାକୁ ଲାଗିଲେ ।

ସେତିକିବେଳେ କେତୋଟି ପାଠ ପ୍ରତି ତାଙ୍କର ଅଧିକ ଶ୍ରଦ୍ଧା ଦେଖା ଦେଇଥିଲା । ଉତ୍ତର ଜୀବନରେ ସେ ଐତିହାସିକ ସତ୍ୟ ନାରାୟଣ ରାଜଗୁରୁଙ୍କ ହାତରେ ତାଙ୍କ ରାଜବଂଶର ଇତି-ହାସ ଲେଖାଇ ଥିଲେ ଓ ତାହା ସଂପୂର୍ଣ୍ଣ ହେବା ପରେ ଓଡ଼ିଶା ସରକାରଙ୍କ ଦ୍ୱାରା ପ୍ରକାଶ କରାଇଥିଲେ ।

## ● ପିତାଙ୍କ ମୃତ୍ୟୁ

କୃଷ୍ଣଚନ୍ଦ୍ର ନାବାଳକ ଥିଲାବେଳେ ୧୯୦୪ ମସିହାରେ, ଅର୍ଥାତ ତାଙ୍କ ମାତ୍ର ତେର ବର୍ଷ ବୟସ ହେଲାବେଳେ ପିତା ଗୌରଚନ୍ଦ୍ର ଗଜପତିଙ୍କ ମୃତ୍ୟୁ ହେଲା । ତାଙ୍କ ଅନ୍ତେ ତାଙ୍କର ଏକମାତ୍ର ଉତ୍ତରାଧିକାରୀ କୃଷ୍ଣଚନ୍ଦ୍ର ପାରଳାଖେମୁଣ୍ଡି ରାଜ୍ୟର ଶାସନ ଦାୟିତ୍ୱ ଗ୍ରହଣ କରିବା କଥା । କିନ୍ତୁ ନାବାଳକ ହେତୁ, ପାରଳାଖେମୁଣ୍ଡି ଇଷ୍ଟେଟ୍‌ର ପରିଚାଳନା ଭାର ଇଂରେଜ ସରକାର ବହନ କଲେ ।

## ● 'ରାଜକୁମାର କଲେଜ,' ମାନ୍ଦ୍ରାଜରେ କୃଷ୍ଣଚନ୍ଦ୍ର

ପାରଳାଖେମୁଣ୍ଡି ଇଷ୍ଟେଟ୍‌ର ପରିଚାଳନା ଭାର ସରକାର ଗ୍ରହଣ କରିନେବା ପରେ, କୃଷ୍ଣଚନ୍ଦ୍ରଙ୍କୁ ଉଚ୍ଚଶିକ୍ଷା ପାଇଁ ମାନ୍ଦ୍ରାଜ ସହରକୁ ପଠାଗଲା । ସେତେବେଳେ ପାରଳା-ଖେମୁଣ୍ଡି ମାଡ୍ରାସ ପ୍ରେସିଡେନ୍‌ସିର ଅନ୍ତର୍ଭୁକ୍ତ ଥିଲା । କୃଷ୍ଣଚନ୍ଦ୍ର ମାନ୍ଦ୍ରାଜ ସହରର 'ରାଜକୁମାର କଲେଜ' ରେ ପ୍ରବେଶ କଲେ ।

ମାନ୍ଦ୍ରାଜରେ କୃଷ୍ଣ ଚନ୍ଦ୍ରଙ୍କ ଘରୋଇ ଶିକ୍ଷକ ଭାବରେ ଦୁଇଜଣ ଇଂରାଜୀ ଅଧ୍ୟାପକ ନିଯୁକ୍ତ ହୋଇଥିଲେ ।

ସେମାନଙ୍କ ନାମ ହେଲା ମଷ୍ଟର କାମେରାନ୍ ମୋଣ୍ଟସନ ଓ ଡ଼ାଲ୍ ଟେହ । ମିଷ୍ଟର ମୋଣ୍ଟସନ ଥିଲେ ୟୁରୋପର ଜଣେ ପ୍ରସିଦ୍ଧ ସାହିତ୍ୟିକ ଓ ଐତିହାସିକ । ସେ କୃଷ୍ଣଚନ୍ଦ୍ରଙ୍କୁ ରାଜନୀତି, ସାଧୁତା, ବିଜ୍ଞାନ, ଇତିହାସ ଓ ଶିଷ୍ଟାଚାର ବିଷୟରେ ଶିକ୍ଷା ପ୍ରଦାନ କରିଥିଲେ ।

● ବିବାହ ଓ ପତ୍ନୀ ବିଚ୍ଛେଦ

କୃଷ୍ଣଚନ୍ଦ୍ର ୧୯୧୩ ମସିହାରେ ବିବାହ କରିଥିଲେ । ସେତେବେଳେ ତାଙ୍କର ବୟସ ଥିଲା ମାତ୍ର ଏକୋଇଶ ବର୍ଷ ।

ଯଥା ସମୟରେ ତାଙ୍କର ଦୁଇଟି ପୁତ୍ର ଓ ଦୁଇଟି କନ୍ୟା ଜନ୍ମ ଗ୍ରହଣ କଲେ । ଜୀବନ ଆନନ୍ଦରେ ଅତିବାହିତ ହେଉଥିଲା । କିନ୍ତୁ ଶେଷ ସନ୍ତାନ ଲାଭର ମାତ୍ର ଦୁଇବର୍ଷ ପରେ ରାଣୀଙ୍କର ଅକାଳ ବିୟୋଗ ଘଟିଲା । ସେତେବେଳେ କୃଷ୍ଣଚନ୍ଦ୍ରଙ୍କ ବୟସ ମାତ୍ର ତେତିଶ ବର୍ଷ । ଏହାପରେ କୃଷ୍ଣଚନ୍ଦ୍ରଙ୍କ ପାରିବାରିକ ଜୀବନ ଦୁଃଖମୟ ହୋଇ ଉଠିଲା । ବିପତ୍ନୀକ କୃଷ୍ଣଚନ୍ଦ୍ର ମାନସିକ ଯନ୍ତ୍ରଣା ଭୋଗକଲେ । କିନ୍ତୁ ଏକଥା ସେ କାହାରି ଆଗରେ ପ୍ରକାଶ ନକରି ନିଜ ମନଭିତରେ ଚାପି ରଖିଥିଲେ । ବୃଦ୍ଧା ମାତାଙ୍କ ଉପରେ ସନ୍ତାନ ସନ୍ତତିଙ୍କ ଲାଳନ ପାଳନ ଭାର ନ୍ୟସ୍ତକରି ସେ ଦେଶ ଓ ଜାତି ଗଠନରେ ନିଜକୁ ନିମଗ୍ନ କଲେ ।

ଏତେ ଅଳ୍ପ ବୟସରେ ବିପତ୍ନୀକ ହେବାରୁ କୃଷ୍ଣଚନ୍ଦ୍ରଙ୍କ କୁଳ ପୁରୋହିତ ତଥା ଶୁଭାକାଂକ୍ଷୀ ତାଙ୍କୁ ଦ୍ୱିତୀୟ ବାର ବିବାହ କରିବା ପାଇଁ ପରାମର୍ଶ ଦେଲେ । ସେ ବୁଝାଇ

କହିଲେ ଯେ, ନିଜ ଦୃଷ୍ଟିରୁ ନ ହେଲେ ମଧ୍ୟ ଧର୍ମ ଦୃଷ୍ଟିରୁ ରାଜା ବିବାହ କରିବା ଉଚିତ । ଧର୍ମଶାସ୍ତ୍ରରେ ଉଲ୍ଲେଖ ଅଛି, ରାଜ୍ୟର ରାଜା ବିପତ୍ନୀକ ରହିବା ଅନୁଚିତ । କିନ୍ତୁ କୃଷ୍ଣଚନ୍ଦ୍ର ଏହି ପରାମର୍ଶ ଗ୍ରହଣ କଲେ ନାହିଁ । ସେ ଯୁକ୍ତି ଦର୍ଶାଇ ରାମଚନ୍ଦ୍ର ବିପତ୍ନୀକ ରହିଥିବା କଥା ସ୍ମରଣ କରାଇ ଦେଇଥିଲେ ଓ ତାଙ୍କର ଆଦର୍ଶ ଅନୁସରଣ କରିବାକୁ ସ୍ଥିର କରିଥିବା ପ୍ରକାଶ କଲେ । ଏହି ଯୁକ୍ତି ଶୁଣି ରାଜଗୁରୁ ନୀରବ ପାଲଟି ଯାଇଥିଲେ ।

ସେତେବେଳେ ବସ୍ତର ରାଜାଙ୍କ ପରଲୋକ ଘଟିଥାଏ । ବସ୍ତର ରାଜ୍ୟର ରାଜକୁମାରୀଙ୍କ ପାଇଁ ଉପଯୁକ୍ତ ପାତ୍ର ଖୋଜା ଚାଲିଥାଏ । ବସ୍ତର ରାଜାଙ୍କ କୁଳପୁରୋହିତ ପାରଳା-ଖେମୁଣ୍ଡିରେ ପହଞ୍ଚି ପ୍ରସ୍ତାବ ଦେଲେ, ଏତେବଡ଼ ବସ୍ତର ରାଜ୍ୟ ଚଳାଇବାକୁ ରାଜା ରହିଲେ ନାହିଁ । ବସ୍ତର ରାଜ-କୁମାରୀଙ୍କୁ ଯିଏ ବିବାହ କରିବ, ସେ ବସ୍ତର ରାଜ୍ୟ ଚଳାଇବ । ଆମ ମତରେ ଗଙ୍ଗ ବଂଶର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ଏଥିପାଇଁ ଉପଯୁକ୍ତ ପାତ୍ର । ମହାରାଜା ସମ୍ମତି ପ୍ରଦାନ କଲେ ବିବାହ ଲଗ୍ନ ସ୍ଥିର କରାଯିବ ।

କିନ୍ତୁ ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ରଦେବ ବିନମ୍ର ସହିତ ଏ ପ୍ରସ୍ତାବକୁ ଆଡ଼େଇଦେଲେ । କୃଷ୍ଣଚନ୍ଦ୍ରଙ୍କର ଯଦି ଅର୍ଥଲୋଭ ଓ କ୍ଷମତା ପ୍ରତି ସାମାନ୍ୟତମ ଆସକ୍ତି ଥାଆନ୍ତା, ତାହାହେଲେ ଏତେବଡ଼ ପ୍ରସ୍ତାବକୁ ଅସ୍ୱୀକାର କରି ନଥାନ୍ତେ ।

କହିବା ବାହୁଲ୍ୟ, ମୟୂରଭଞ୍ଜ ରାଜଭ୍ରାତାଙ୍କ ସହିତ ବସ୍ତର ରାଜ୍ୟର ରାଜକୁମାରୀଙ୍କ ଶୁଭ ବିବାହ ଯଥା ସମୟରେ ନିଷ୍ପନ୍ନ ହୋଇଥିଲା ।

### ❀ କୃଷ୍ଣଚନ୍ଦ୍ରଙ୍କ ରାଜ୍ୟର ଶାସନଭାର ଗ୍ରହଣ

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ୧୯୧୩ ମସିହାରେ ପାରଳାର ଶାସନ ଭାର ଗ୍ରହଣ କରିଥିଲେ। ଏହି ବର୍ଷ ମଧ୍ୟ ତାଙ୍କର ବିବାହ ହୋଇଥିଲା।

ସେତେବେଳେ ଓଡ଼ିଶାର ଅନ୍ୟ କେତେ ରାଜା ମହାରାଜା ପ୍ରଜାଙ୍କ ଧନରେ ବିଳାସ ବ୍ୟସନରେ ନିମଗ୍ନ ଥିଲାବେଳେ ରାଜା କୃଷ୍ଣଚନ୍ଦ୍ର ନିଜ ରାଜ୍ୟର ତଥା ନିଜ ରାଜ୍ୟର ପ୍ରଜାମାନଙ୍କର ସର୍ବବିଧ କଲ୍ୟାଣ ସାଧନ ନିମନ୍ତେ ସର୍ବଦା ତତ୍ପରତା ପ୍ରକାଶ କରିବାକୁ ଲାଗିଲେ। ତାଙ୍କ ମନରେ ଗରିବ ଓଡ଼ିଆ ପ୍ରଜା ଓ ଆଦିବାସୀ ଶବର ସମ୍ପ୍ରଦାୟର ଦୁଃଖ ଦୁର୍ଦ୍ଦଶା ଦୂର କରିବାପାଇଁ ନାନା ପ୍ରକାର ଯୋଜନା ଦେଖା ଦେଇଥିଲା।

ରାଜ୍ୟରେ ପର୍ଯ୍ୟାପ୍ତ ଜଳସେଚନ ସୁବିଧା ପାଇଁ ସେ ବହୁବିଧ ଉଦ୍ୟମରେ ଲାଗିପଡ଼ିଥିଲେ। ସୀତା ସାଗର, ରାମ ସାଗର ଓ କୃଷ୍ଣ ସାଗର ଜଳସେଚନ ଉଦ୍ଦେଶ୍ୟରେ ହିଁ ଖୋଳା ଯାଇଥିଲା।

ପାରଳାଖେମୁଣ୍ଡି ଠାରୁ ନୌପଡ଼ା ପର୍ଯ୍ୟନ୍ତ ପଡ଼ିଥିବା ରେଳପଥକୁ ସେ ଗୁଣୁପୁର ପର୍ଯ୍ୟନ୍ତ ସଂପ୍ରସାରିତ କରିଥିଲେ। ଆଦର୍ଶ କୃଷି ଓ ଗୋପାଳନ ନିମନ୍ତେ ସେ ବହୁ ଧନ ବ୍ୟୟ କରି ହୋମ ଫାର୍ମ ଚଳାଉଥିଲେ। କୃଷ୍ଣଚନ୍ଦ୍ର ଗଜପତିଙ୍କ ଅଭିଷେକ ଉତ୍ସବ ମହାସମାରୋହରେ ପାଳିତ ହୋଇଥିଲା। ଏଥିରେ ବହୁ ମାନ୍ୟଗଣ୍ୟ ବ୍ୟକ୍ତି ନିମନ୍ତ୍ରିତ ହୋଇ ଯୋଗ ଦେଇଥିଲେ। କଥିତ ଅଛି, ଏହି ଦିନ ଗଜପତି ବଂଶର କୁଳପୁରୋହିତ ପଣ୍ଡିତ ମଧୁସୂଦନ ରାଜଗୁରୁ ନିଜ ସଙ୍ଗରେ ଯୁବକ

କୃଷ୍ଣଚନ୍ଦ୍ରଙ୍କୁ ଶ୍ରୀଜଗନ୍ନାଥ ମନ୍ଦିରକୁ ଦର୍ଶନ ପାଇଁ ନେଇ ଯାଇଥିଲେ । ସେଠାରେ କୁଟ୍ଟୋଝୁରୋହିତ ମହାରାଜା କୃଷ୍ଣଚନ୍ଦ୍ରଙ୍କୁ ଭବିଷ୍ୟ ଜୀବନରେ କେତୋଟି ନିତି ନିୟମ ମାନି ଚଳିବାକୁ ପରାମର୍ଶ ଦେଇଥିଲେ । କୃଷ୍ଣଚନ୍ଦ୍ର ପ୍ରଭୁ ଜଗନ୍ନାଥଙ୍କ ସମ୍ମୁଖରେ ସମସ୍ତ ପରାମର୍ଶ ମାନି ଚଳିବାକୁ ପ୍ରତିଶ୍ରୁତି ଦେଇ-ଥିଲେ । ପରାମର୍ଶ ଗୁଡ଼ିକ ହେଲା—

(୧) ପ୍ରଜାମାନଙ୍କୁ ସନ୍ତୁଷ୍ଟ କରିବା ।
(୨) ହିନ୍ଦୁ ଧର୍ମ ରକ୍ଷା କରିବା ।
(୩) ସୁରାପାନ ନ କରିବା ।
(୪) ପରଧନ ପ୍ରତି ଲୋଭ ନକରିବା ଓ
(୫) ନିରପରାଧୀଙ୍କୁ ଦଣ୍ଡ ନଦେବା ।

କହିବା ବାହୁଲ୍ୟ ମହାରାଜ କୃଷ୍ଣଚନ୍ଦ୍ର ଗଜପତି ଦେବ ତାଙ୍କ ଜୀବନରେ ଏହିସବୁ ପରାମର୍ଶକୁ ଅକ୍ଷରେ ଅକ୍ଷରେ ପାଳନ କରିଥିଲେ ।

୧୯୧୩ ମସିହା ଏପ୍ରିଲ ମାସ ୨୭ ତାରିଖ ଦିନ ମହାରାଜା କୃଷ୍ଣଚନ୍ଦ୍ର ରାଜଗାଦିରେ ବସିବା ପୂର୍ବରୁ ଶ୍ରୀଜଗନ୍ନାଥଙ୍କ ଦର୍ଶନ କରି ପ୍ରଜାମାନଙ୍କ ସୁଖ ସୁବିଧା ତଥା କଲ୍ୟାଣ କାର୍ଯ୍ୟରେ ଆଜୀବନ ବ୍ରତୀ ହେବାପାଇଁ ଶପଥ ଗ୍ରହଣ କରିଥିଲେ ।

● ଶିକ୍ଷା ପ୍ରସାର

ରାଜ୍ୟରେ ଶିକ୍ଷା ପ୍ରସାର ଘଟାଇ ପ୍ରଜାମାନଙ୍କୁ ଶିକ୍ଷିତ କରାଇବା ତାଙ୍କର ଉଦ୍ଦେଶ୍ୟ ଥିଲା । ସେ ଜାଣିଥିଲେ ଯେ, ପୁରୁଷମାନଙ୍କ ସଙ୍ଗରେ ସ୍ତ୍ରୀମାନେ ମଧ୍ୟ ଶିକ୍ଷିତା ହେବା

ଆବଶ୍ୟକ । ତେଣୁ ନାରୀ ଶିକ୍ଷା ପାଇଁ ସେ ଗୋଟିଏ ଇଂରାଜୀ ବିଦ୍ୟାଳୟ ସ୍ଥାପନ କରିଥିଲେ ।

ସଂସ୍କୃତ ଭାଷା ସାହିତ୍ୟର ଅନୁଶୀଳନ ଓ ପ୍ରସାର ନିମନ୍ତେ ରାଜା କୃଷ୍ଣଚନ୍ଦ୍ର ଏକ ସଂସ୍କୃତ କଲେଜ ସ୍ଥାପନ କରିଥିଲେ । ସଂସ୍କୃତ କଲେଜରେ ଅଧ୍ୟୟନ କରୁଥିବା ଛାତ୍ର-ମାନଙ୍କର ରହିବା ଓ ଖାଇବା ଖର୍ଚ୍ଚ ସେ ନିଜେ ବହନ କରୁଥିଲେ ।

ନିଜ ରାଜ୍ୟ ବ୍ୟତୀତ ଓଡ଼ିଶାର ବିଭିନ୍ନ ବିଦ୍ୟାଳୟ ଓ ଅନୁଷ୍ଠାନମାନଙ୍କୁ ସେ ମୁକ୍ତ ହସ୍ତରେ ଅର୍ଥଦାନ କରୁଥିଲେ ।

ପାରଳା ଖେମୁଣ୍ଡିର ବୌଦ୍ଧିକ ଓ ସାମାଜିକ ଜୀବନର ଉନ୍ନତି ନିମନ୍ତେ ସେ ଏଠାରେ ଏକ କଲେଜ ସ୍ଥାପନ କରି-ଥିଲେ । ପାରଳାଖେମୁଣ୍ଡିର କୃଷ୍ଣଚନ୍ଦ୍ର ଗଜପତି କଲେଜ ଓଡ଼ିଶାର ଦ୍ୱିତୀୟ ପୁରାତନ କଲେଜ ରୂପେ ଖ୍ୟାତ । ଏହି କଲେଜ ସ୍ଥାପନ ହେତୁ ବହୁ ପ୍ରତିଭାଶାଳୀ ଛାତ୍ର ଉଚ୍ଚତର ଶିକ୍ଷାଲାଭ ପାଇଁ ସୁବିଧା ସୁଯୋଗ ପାଇଥିଲେ । ଏହି କଲେଜ ଦକ୍ଷିଣ ଓଡ଼ିଶାର ଏକମାତ୍ର କଲେଜ ରୂପେ ଅନେକ ବର୍ଷ ପର୍ଯ୍ୟନ୍ତ ଜ୍ଞାନାଲୋକ ବିତରଣ କରି ଆସୁଥିଲା ।

ରାଜା ବହୁ ମେଧାବୀ ଛାତ୍ରଙ୍କୁ କଲେଜରେ ମାଗଣାରେ ପଢ଼ିବା ଓ ଛାତ୍ରାବାସରେ ରହିବା ପାଇଁ ସୁବିଧା କରି ଦେଉ-ଥିଲେ । ଏ କ୍ଷେତ୍ରରେ ମହାରାଜାଙ୍କ ଛାତ୍ରବତ୍ସଳତା ଅଦ୍ୱିତୀୟ ଥିଲା । ତାଙ୍କ ହେମପାର୍ମିଉ ଆବାସରୁ ହେଉଥିବା ଆମ୍ବ, ଦୁଧ, ଦହି ଓ ଫଳମୂଳ ପ୍ରଥମେ ଛାତ୍ରାବାସର ଛାତ୍ରମାନଙ୍କୁ ବିତରଣ କରାଯାଉଥିଲା । ତାପରେ ବଳକା ଜିନିଷ ଅନ୍ୟତ୍ର ପଠା ହେଉଥିଲା ।

## ● ରଙ୍ଗାଳୟ ସ୍ଥାପନ ଓ ଗ୍ରନ୍ଥ ପ୍ରକାଶନ

ଗଜପତି କୃଷ୍ଣଚନ୍ଦ୍ର ଦେବ ତାଙ୍କ ପିତୃବ୍ୟଙ୍କ ସ୍ମୃତିରକ୍ଷା ନିମନ୍ତେ ଟୋଟିଏ ରଙ୍ଗାଳୟ ନିର୍ମାଣ କରାଇଥିଲେ । ଏଠାକାର କଳାକାରମାନେ ଉପସ୍ଥିତ ହୋଇ ରାଜ୍ୟର କଳା ସଂସ୍କୃତିର ଚର୍ଚ୍ଚା କରୁଥିଲେ ।

ରାଜ୍ୟର ଦୁସ୍ଥ କବିମାନଙ୍କ ଗ୍ରନ୍ଥ ପ୍ରକାଶ ଦାୟିତ୍ୱ ରାଜା ନିଜେ ବହନ କରୁଥିଲେ । ଫଳରେ ତାଙ୍କ ରାଜ୍ୟରେ ବହୁ ମୂଲ୍ୟବାନ ଗ୍ରନ୍ଥ ପ୍ରକାଶ ଲାଭ କଲା ।

## ● କୃଷ୍ଣଚନ୍ଦ୍ରଙ୍କ ଚରିତ୍ର

କୃଷ୍ଣଚନ୍ଦ୍ରଙ୍କ ଚରିତ୍ର ଅତି ଉଚ୍ଚମାନର ଥିଲା । ବ୍ୟକ୍ତିଗତ ଜୀବନରେ ସେ ସାଧୁ ଓ ସଚ୍ଚୋଟ ଥିଲେ । ତାଙ୍କ ହୃଦୟ ଅତ୍ୟନ୍ତ ଦୟାଶୀଳ ଥିଲା । ଈଶ୍ୱରଙ୍କଠାରେ ତାଙ୍କର ଅଚଳ ଭକ୍ତି ଥିଲା । ସେ କୁଳାଭିମାନୀ ଥିଲେ । ପଣ୍ଡିତ ଓ କଳାକାର-ମାନଙ୍କୁ ଆଦର କରୁଥିଲେ ।

କିନ୍ତୁ ଅନ୍ୟ ପକ୍ଷରେ, ଯିଏ ତାଙ୍କ ଆଗରେ ବଡ଼ିମା ପ୍ରକାଶ କରୁଥିଲା କିମ୍ବା ମିଥ୍ୟା କଥା କହୁଥିଲା, ତାକୁ ସେ ଘୃଣା ଚକ୍ଷୁରେ ଦେଖୁଥିଲେ । ସେପରି ଲୋକଙ୍କୁ ପାଖରେ ପୂରାଇ ନ ଦେବା ପାଇଁ କଡ଼ା ତାଗିଦ ଦେଉଥିଲେ ।

ପୁଣି କୌଣସି ଚାଟୁକାର ଚାଟୁବାକ୍ୟ କହି ମହାରାଜା କୃଷ୍ଣଚନ୍ଦ୍ରଙ୍କୁ ମୋହିତ କରିବାକୁ ଚାହିଁଲେ, ସେ ସେପରି ଲୋକଙ୍କୁ ପାଖରୁ ତଡ଼ି ଦେଉଥିଲେ । ତାଙ୍କ ଆଗରେ ତାଙ୍କର ଗୁଣଗାନ କଲେ ବିରକ୍ତ ହୋଇ ଉଠୁଥିଲେ ।

ଅପର ପକ୍ଷରେ, ସେ ଥିଲେ କ୍ଷଣକୋପୀ । ଏହା ତାଙ୍କର ଚରିତ୍ର ଦୋଷଥିଲା । ସେ ରାଗି ଯାଇଥିଲାବେଳେ ତାଙ୍କ ପାଖକୁ କୌଣସି ଲୋକ ଆସି ପାରୁ ନ ଥିଲେ । ସେତେ-ବେଳେ ସମସ୍ତେ ତାଙ୍କୁ ଡ଼ରିମରି ରହୁଥିଲେ । ତେବେ ରାଗରେ ଯଦି କୌଣସି ନିରପରାଧ ବ୍ୟକ୍ତିକୁ ଦଣ୍ଡ ଦେଉଥିଲେ, ପର-ମୁହୂର୍ତ୍ତରେ ତାହା ଉପଲବ୍ଧି କରିବା ମାତ୍ରେ ଖୁବ୍ ଅନୁତାପ କରୁଥିଲେ । ଖାଲି ସେତିକି ନୁହେଁ, ଦଣ୍ଡିତ ବ୍ୟକ୍ତିର ଉପକାର କରିବାକୁ ସେ ତତ୍ପର ହୋଇ ଉଠୁଥିଲେ ।

ଅନ୍ୟାୟ ଦେଖିଲେ ମହାରାଜା ସହ୍ୟ କରି ପାରୁନ-ଥିଲେ । ଦୋଷୀକୁ ଦଣ୍ଡବିଧାନ କଲାବେଳେ ସେ ପର ଅପଣା ଭେଦଭାବ ଭୁଲି ଯାଉଥିଲେ ।

କୃଷ୍ଣଚନ୍ଦ୍ରଙ୍କ ଦୈନନ୍ଦିନ କାର୍ଯ୍ୟକ୍ରମ

ମହାରାଜା କୃଷ୍ଣଚନ୍ଦ୍ର ଗଜପତିଦେବ ଅତ୍ୟନ୍ତ ସମୟ ସଚେତନ ଥିଲେ । ବିଛଣା ଛାଡ଼ିବା ଠାରୁ ଆରମ୍ଭ କରି ରାତି ହେବା ପର୍ଯ୍ୟନ୍ତ, ସେ ଘଣ୍ଟା କଣ୍ଟାକୁ ଜଗିକରି କାମ କରୁ-ଥିଲେ । ଏହି ଅଭ୍ୟାସକୁ ସେ ମାନ୍ଦ୍ରାଜ ନଗରୀରେ ତାଙ୍କର ଘରୋଇ ଶିକ୍ଷକ ମିଷ୍ଟର ମୋରିସନ୍‌ଙ୍କ ନିକଟରୁ ଆୟତ୍ତ କରିଥିଲେ ।

ପ୍ରତ୍ୟହ ସକାଳ ଚାରିଟାରେ ଶଯ୍ୟା ତ୍ୟାଗ କରିବା କୃଷ୍ଣଚନ୍ଦ୍ରଙ୍କ ଅଭ୍ୟାସରେ ପରିଣତ ହୋଇ ଯାଇଥିଲା । ସକାଳ ଛଅଟା ପୂର୍ବରୁ ସାମାନ୍ୟ କଫି ଓ ଜଳଖିଆ ଖାଇନେବାପରେ କୃଷି କ୍ଷେତ୍ରକୁ ଯାତ୍ରା କରୁଥିଲେ । ପ୍ରଥମେ ସେ ଘୋଡ଼ା-

ଗାଡ଼ିରେ ବସି କୃଷିକ୍ଷେତ୍ରକୁ ଯାଉଥିଲେ । ପରେ ଘୋଡ଼ାଗାଡ଼ି ପରିବର୍ତ୍ତେ ମୋଟରଗାଡ଼ି ବ୍ୟବହାର କଲେ ।

କୃଷିକ୍ଷେତ୍ରରେ ପହଞ୍ଚିବା ମାତ୍ରେ ସେ ଗୋରୁମାନଙ୍କର ଖାଦ୍ୟ ଓ ସ୍ୱାସ୍ଥ୍ୟ ସଂପର୍କରେ ତଦାରଖ କରୁଥିଲେ । ତାପରେ ଗୋରୁମାନେ ପେଟ ପୂରାଇ ଖାଇବା ଶେଷ କରିବା ଯାଏ ସେଠାରେ ବସି ରହୁଥିଲେ । ସେହି ସମୟ ମଧ୍ୟରେ ସେଠା-କାର କର୍ମଚାରୀମାନଙ୍କ ଅଭାବ ଅଭିଯୋଗ ଶୁଣି ସଙ୍ଗେ ସଙ୍ଗେ ତାହାର ପ୍ରତିକାର କରୁଥିଲେ ।

ରାଜାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ଯୋଗୁ କୃଷି କ୍ଷେତ୍ରରେ କମ୍ପା ଗୋରୁଙ୍କ ସେବା ଯତ୍ନରେ ଆଦୌ ଅବହେଳା ଘଟୁ-ନଥିଲା । ଗୋରୁମାନଙ୍କ ସ୍ୱାସ୍ଥ୍ୟରକ୍ଷା ନିମନ୍ତେ ସେ ଜଣେ ପଶୁ ଚିକିତ୍ସକଙ୍କୁ ନିଯୁକ୍ତ ଦେଇଥିଲେ ଓ ପଶୁ ଚିକିତ୍ସାଳୟ ବସାଇ-ଥିଲେ । ଏହା କେବଳ ରାଜାଙ୍କ ହୋମ୍ ଫାର୍ମ ପାଇଁ ନୁହେଁ, ତାଙ୍କ ଜମିଦାରୀର ସମସ୍ତ ପ୍ରଜାଙ୍କର ଉପକାରରେ ଆସୁଥିଲା । କୃଷି କ୍ଷେତ୍ରରୁ ସେ ଠିକ୍ ନଅଟା ବେଳେ ନଅରକୁ ଫେରୁ-ଥିଲେ ଏହା ପରେ ସ୍ନାନ ଆଦି ନିତ୍ୟକର୍ମ ଶେଷକରି ପଟ୍ଟବସ୍ତ୍ର ପରିଧାନ ପୂର୍ବକ ଦେବାର୍ଚ୍ଚନା କାର୍ଯ୍ୟରେ ନିମଗ୍ନ ରହୁଥିଲେ । ସେତେବେଳେ ରାଜଗୁରୁ ଓ ପଣ୍ଡିତ ବ୍ରାହ୍ମଣମାନେହିଁ ଦେବା-ର୍ଚ୍ଚନା ଗୃହରେ ଉପସ୍ଥିତ ରହୁଥିଲେ । ଅନ୍ୟମାନଙ୍କୁ ଦେବା-ର୍ଚ୍ଚନା ଗୃହକୁ ଯିବା ବାରଣ ଥିଲା । ଏକ ଶାନ୍ତ ପରିବେଶ ମଧ୍ୟରେ ସେ ଇଷ୍ଟଦେବଙ୍କ ଆରାଧନା ଶେଷକରି ନିତି ପ୍ରତ୍ୟେକ ତାଙ୍କରି ଦ୍ୱାରା ପରିଚାଳିତ ଅନ୍ୟାନ୍ୟ ମଠ ମନ୍ଦିର-ମାନଙ୍କର ଭଲମନ୍ଦ ଖବର ପଚାରି ବୁଝୁଥିଲେ ।

ଦେବାର୍ଚ୍ଚନା ପରେ ସକାଳ ଏଗାର ଘଣ୍ଟା ବେଳକୁ ତାଙ୍କର ଭୋଜନ ଶେଷ ହେଉଥିଲା । ଏହାପରେ କଚେରୀ ଘରେ ବସି ଦିନ ଦୁଇଟା ପର୍ଯ୍ୟନ୍ତ ଶାସନ ସଂପର୍କୀୟ ଫାଇଲ ପତ୍ର ଦେଖୁଥିଲେ । ବେଳେ ବେଳେ ସେକ୍ରେଟାରୀ, ମେନେଜର କିମ୍ବା ଦେୱାନଙ୍କୁ ଡକାଇ ବିଭିନ୍ନ ବିଷୟରେ ପରାମର୍ଶ କରୁଥିଲେ ଓ ଆବଶ୍ୟକ ସ୍ଥଳେ ଆଦେଶ ଦେଉଥିଲେ ।

ଅପରାହ୍ନ ଦୁଇଘଣ୍ଟା ପରେ ପ୍ରାୟ ଦେଢ଼ ଘଣ୍ଟା ପର୍ଯ୍ୟନ୍ତ ବିଶ୍ରାମ ଗ୍ରହଣ କରିବା କୃଷ୍ଣଚନ୍ଦ୍ରଙ୍କ ଅଭ୍ୟାସ ଥିଲା । ଏହା ପରେ ପରେ ସେ ଖବର କାଗଜ ଓ ବହିପତ୍ର ପଢ଼ାପଢ଼ି କରୁଥିଲେ ।

ଅପରାହ୍ନ ଚାରିଟା ବେଳେ ସେ ସାମାନ୍ୟ ଜଳଯୋଗ ସହିତ କଫି ଖାଉଥିଲେ । ଏହା ପରେ ଇଷ୍ଟେଟର ଜଙ୍ଗଲ ତଦାରଖ କରିବାକୁ ବାହାରି ପଡ଼ୁଥିଲେ । ଏତିକିବେଳେ ଜଙ୍ଗଲ ବିଭାଗ କର୍ମଚାରୀ ଓ ବାଡୁଆମାନେ ତାଙ୍କ ସଙ୍ଗରେ ରହୁଥିଲେ । ଜଙ୍ଗଲ କିପରି ବଢ଼ିବ, କେଉଁଠି ନୂଆ ଗଛ ଲାଗିବ, ସେଥିରେ ଠିକନିଖି ବ୍ୟବସ୍ଥା କରିବା ତାଙ୍କର ଦୈନନ୍ଦିନ କର୍ମଥିଲା । କେତେ ଦିନ ଏହି ସମୟରେ ସେ ଶିକାର କରିବା ତାଙ୍କର ମସ୍ତବଡ଼ ସଉକଥିଲା ।

ଯେଉଁଦିନ ସେ ଜଙ୍ଗଲ ପରିଦର୍ଶନରେ ଯାଉ ନ ଥିଲେ, ସେ ଦିନ ସନ୍ଧ୍ୟାରେ କ୍ରିକେଟ ଖେଳରେ ଯୋଗ ଦେଉଥିଲେ । ନଅର ପାଖରେ ଥିବା ବରାଟ ଖେଳ ପଡ଼ିଆରେ ସେ କଲେଜ ଟିମ୍‌ର ଖେଳାଳୀଙ୍କ ସଙ୍ଗରେ ମିଶି ବ୍ୟାଟିଂ କରୁଥିଲେ ।

ଏହିପରି ଭାବରେ ରାଜା କୃଷ୍ଣଚନ୍ଦ୍ର ସକାଳ ଠାରୁ ରାତ୍ରି ପର୍ଯ୍ୟନ୍ତ ବିଭିନ୍ନ କାର୍ଯ୍ୟ ନିର୍ଘଣ୍ଟ ଭିତରେ ନିମଗ୍ନ ରହୁଥିଲେ ।

## ● ଅଶ୍ୱାରୋହଣ

ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କର ଅତି ପ୍ରିୟ କର୍ମ ଥିଲା ଅଶ୍ୱାରୋହଣ । ଅଶ୍ୱ ପୃଷ୍ଠରେ ବସି ସେ ଖୁବ୍ ଦ୍ରୁତ ଗତିରେ ଦୂରଦୂରାନ୍ତକୁ ଯାତ୍ରା କରୁଥିଲେ । ମହେନ୍ଦ୍ରତନୟା ନଦୀ ତୀରରେ ସେ ତାଙ୍କର ପ୍ରିୟ ସବାରୀ ଅଶ୍ୱରେ ବସି ତୀବ୍ର ବେଗରେ ଗତି କରି ପରମ ଆନନ୍ଦ ଲାଭ କରୁଥିଲେ । ଏଥିପାଇଁ ସେ ବଳିଷ୍ଠ ବଛା ବଛା ଘୋଡ଼ା ଆଣି ରଖିଥିଲେ ଓ ବ୍ୟକ୍ତିଗତ ଭାବରେ ସେମାନଙ୍କ ତତ୍ତ୍ୱାବଧାନ କରୁଥିଲେ ।

ଥରେ ରାଜା ତାଙ୍କର ପ୍ରିୟ ଅଶ୍ୱ ପୃଷ୍ଠରେ ବସି ମହେନ୍ଦ୍ର ତନୟା ନଦୀ ତୀରରେ ଯାତ୍ରା କରୁଥିଲା ବେଳେ, ଏକ ଗିଆଳ ଗାତ ଭିତରେ ଅଶ୍ୱର ଆଗପାଦ ଖସି ଯିବା ଯୋଗୁ ଅଶ୍ୱର ମୃତ୍ୟୁ ଘଟିଲା । ରାଜା ମଧ୍ୟ ଖଣ୍ଡିଏ ଦୂରରେ ଛିଟିକି ହୋଇ ପଡ଼ି ମୂର୍ଚ୍ଛିତ ଅବସ୍ଥାରେ ପଡ଼ି ରହିଲେ । ସେହି ନିର୍ଜନ ମଧ୍ୟାହ୍ନ ସମୟରେ ସୌଭାଗ୍ୟକୁ ଜଣେ ବୃଦ୍ଧ ବ୍ରାହ୍ମଣ ଘଟଣା ସ୍ଥଳରେ ପହଞ୍ଚିଗଲେ । ସେ ହାତରେ ଧରିଥିବା କମଣ୍ଡଳର ପାଣି ରାଜାଙ୍କ ମୁହଁରେ ଦେଇ ତାଙ୍କୁ ସଚେତ କଲେ । ସଙ୍ଗେ ସଙ୍ଗେ ରାଜା ନିଶ୍ଚିତ ମୃତ୍ୟୁ ମୁଖରୁ ଉଦ୍ଧାର ପାଇଲେ । ବୃଦ୍ଧ ବ୍ରାହ୍ମଣ ପୁରସ୍କାର ପାଇ ରାଜାଙ୍କ ସୁଦୀର୍ଘ ଜୀବନ କାମନା କଲେ ।

## ● କୃଷି କମିଶନ ସଭ୍ୟ

୧୯୨୯ ମସିହାରେ ତତ୍‌କାଳୀନ ଭାରତ ସରକାର କୃଷି କମିଶନ ଗଠନ କରିଥିଲେ । ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବଙ୍କୁ ଉକ୍ତ କମିଶନର ସଭ୍ୟ ରୂପେ ଗ୍ରହଣ କରାଯାଇଥିଲା ।

କମିଶନର ସଭ୍ୟମାନେ ବିଭିନ୍ନ ଅଞ୍ଚଳ ପରିଦର୍ଶନ କରି ଉନ୍ନତ କୃଷି ଉତ୍ପାଦନ ନିମନ୍ତେ ସୁପାରିଶ କରିଥିଲେ । ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ଇତ୍ୟବସରରେ ବର୍ମା ଗସ୍ତ କରି ସେଠାରୁ ଉତ୍କୃଷ୍ଟ ଜାତୀୟ ଆଖୁ ସଂଗ୍ରହ କରି ଆଣିଥିଲେ । ଭାରତର ବିଭିନ୍ନ ସ୍ଥାନରେ ବର୍ମାର ଉତ୍କୃଷ୍ଟ ଧରଣର ଆଖୁ ଚାଷ ପ୍ରବର୍ତ୍ତିତ ହେଲା । କୃଷୀକୁଳ ଏତଦ୍ୱାରା ଉପକୃତ ହେଲେ ।

କମିଶନର ସଭ୍ୟମାନେ ଇଂରେଜ ସରକାରଙ୍କ ବିଭିନ୍ନ ଅଞ୍ଚଳ ଗସ୍ତ କରି ଗସ୍ତଖର୍ଚ୍ଚ ନେଇ ନଥିଲେ । ପାରଳାର ମହାରାଜା ଏଥିପାଇଁ ଲକ୍ଷେ ଟଙ୍କା ପାଇଥିଲେ । କିନ୍ତୁ ଏ ଟଙ୍କାରୁ କେଣ ଅନ୍ୟ ସଭ୍ୟମାନଙ୍କ ପରି ବ୍ୟକ୍ତିଗତ ଖର୍ଚ୍ଚରେ ନଲଗାଇ, ବରଂ ତହିଁରେ ଅଧିକ କିଛି ଅର୍ଥ ମିଶାଇ କୁନୁର ଠାରେ ଏକ 'ସୁଷମ ଖାଦ୍ୟ ଗବେଷଣା କେନ୍ଦ୍ର' ସ୍ଥାପନ ପାଇଁ ଦାନ କରି ଦେଇଥିଲେ ।

ଏହିପରି ଭାବରେ ମହାରାଜା କୃଷ୍ଣଚନ୍ଦ୍ର ଦେବ ପ୍ରଜାକୁଳର ମଙ୍ଗଳ ସାଧନ ନିମନ୍ତେ ବହୁ ଅର୍ଥ ମୁକ୍ତ ହସ୍ତରେ ଦାନ କରିଥିବା ଦୃଷ୍ଟାନ୍ତ ରହିଛି ।

## ● ବ୍ୟକ୍ତିଗତ ଓ ପାରିବାରିକ ଜୀବନ

କୃଷ୍ଣଚନ୍ଦ୍ର ଦେବଙ୍କର ବ୍ୟକ୍ତିଗତ ଓ ପାରିବାରିକ ଜୀବନ ଅତ୍ୟନ୍ତ ଦୁଃଖମୟ ଥିଲା । ସେ ତେର ବର୍ଷ ବୟସରେ ତାଙ୍କର ପିତାଙ୍କୁ ହରାଇଥିଲେ । ସେ ବାଳକ ଥିବା ହେତୁ ତାଙ୍କ ଇଷ୍ଟେଟ ପରିଚାଳନା ଭାର ଇଂରେଜ ସରକାରଙ୍କ ହାତକୁ ଚାଲି ଯାଇଥିଲା ।

୧୯୧୬ ମସିହାରେ ତାଙ୍କର ବିବାହ ହେଲା । ବିବାହ ପରେ ଦୁଇଟି ପୁତ୍ର ଓ ଦୁଇଟି କନ୍ୟା ମଧ୍ୟ ଲାଭ କଲେ । କିନ୍ତୁ ମାତ୍ର ୩୩ ବର୍ଷ ବୟସରେ ମହାରାଜା କୃଷ୍ଣଚନ୍ଦ୍ର ବିପତ୍ନୀକ ହେଲେ । ଯୁବକ ବୟସରେ ବିପତ୍ନୀକ ହେବା କେତେ ଦୁର୍ବିସହ, ତାହା ଅନୁଭବୀ ମାନେ ବୁଝିପାରିବେ । ଦ୍ୱିତୀୟ ବାର ବିବାହ ପ୍ରସ୍ତାବକୁ ସେ ଦୃଢ଼ କଣ୍ଠରେ ଅସ୍ୱୀକାର କରିଥିଲେ । ବୃଦ୍ଧ ମାତାଙ୍କ ଉପରେ ପୁଅ ଝିଅଙ୍କର ଲାଳନ ଭାର ପଡ଼ିଥିଲା ।

ପତ୍ନୀଙ୍କ ବିୟୋଗ ପରେ ଯେଉଁ ଚାରୋଟି ସନ୍ତାନଙ୍କୁ ସେ ଅତି ଯତ୍ନରେ ବଢ଼ାଇଥିଲେ, ସେମାନଙ୍କରୁ ଜ୍ୟେଷ୍ଠପୁତ୍ର ଓ ଜ୍ୟେଷ୍ଠା-କନ୍ୟାଙ୍କ ଅକାଳ ବିୟୋଗ ଘଟିଲା । ଅବେଳରେ ପୁତ୍ରକନ୍ୟାଙ୍କ ଅକାଳ ବିୟୋଗ ତାଙ୍କ ପ୍ରାଣରେ ଦାରୁଣ ଆଘାତ ପହଞ୍ଚାଇ-ଥିଲା ।

ସର୍ବୋପରି ଓଡ଼ିଶାରେ ସେ ଯେଉଁ ନିର୍ମଳ ଶାସନର ସ୍ୱପ୍ନ ଦେଖି ନୂତନ ଓଡ଼ିଶାରେ ପ୍ରତିଷ୍ଠା କରିଥିଲେ ଓ ନୂତନ ଓଡ଼ିଶାର ପ୍ରତିଷ୍ଠା ପାଇଁ ଧନ, ମାନ ଓ ଜୀବନ ଉତ୍ସର୍ଗ କରି-ଥିଲେ, ନୂତନ ଓଡ଼ିଶାର ପ୍ରତିଷ୍ଠା ପରେ ତାଙ୍କ ସ୍ୱପ୍ନର ଓଡ଼ିଶାର ଚିତ୍ର ବଦଳି ଯାଉଥିବା ଦେଖି ସେ ମନ ମଧ୍ୟରେ ଦାରୁଣ ଆଘାତ

ପାଇଲେ । ମହାଭାରତର ଭୀଷ୍ମଦେବ ମହାଭାରତ ଯୁଦ୍ଧରୁ ବିଦାୟ ନେଇ ଯେପରି ଶରଶଯ୍ୟାରେ ପଡ଼ିରହି କୀରବ ଦର୍ଶକ ସାଜିଥିଲେ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ସେହିପରି ଓଡ଼ିଶାର ରାଜନୀତିରୁ ନିଜକୁ ଗୋଟାପଣେ ଅପସାରିତ କରି ଜଣଙ୍କ ନୀରବ ଦର୍ଶକ ମାତ୍ର ହୋଇ ରହିଥିଲେ ।

ନିଜର ଅବାଧ ଅମାନିଆ ପୁତ୍ର ପିତାର ପରାମର୍ଶକୁ ପ୍ରତ୍ୟାଖ୍ୟାନ କରି ଅବାଟରେ ଚାଲିଲେ ଦରଦୀ ପିତା ଯେଉଁ ପ୍ରକାର ନୈରାଶ୍ୟ ଓ ଆତ୍ମଗ୍ଲାନି ଅନୁଭବ କରିଥାଏ, ସ୍ୱତନ୍ତ୍ର ଓଡ଼ିଶାର ହୀନ ରାଜନୈତିକ ଚିତ୍ର ସ୍ୱତନ୍ତ୍ର ଓଡ଼ିଶାର ପ୍ରତିଷ୍ଠାତା ଓ ଚିର ପ୍ରତିମା ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ମନରେ ସେହିପରି ଦାରୁଣ ଆଘାତ ଆଣି ଦେଇଥିଲା । ସେ ଆଉ ଓଡ଼ିଶାର ରାଜନୀତି କ୍ଷେତ୍ରରେ ପାଦ ଦକାଇଲେ ନାହିଁ ।

## ● ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ

୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଓଡ଼ିଶା ଅଧିକାର କରିବାପରେ ଏ ଦୁର୍ଦ୍ଧର୍ଷ ଜାତିକୁ ଭାଗ ଭାଗ କରି, ଏକାଧିକ ପ୍ରଦେଶ ସଙ୍ଗରେ ମିଶାଇ ଏ ଦେଶ ଓ ଜାତିକୁ କାବୁ କଲେ । ଓଡ଼ିଶାର ଉତ୍ତର ଓ ପୂର୍ବ ଅଞ୍ଚଳ ବଙ୍ଗଳା ସଙ୍ଗେ, ପଶ୍ଚିମ ଓଡ଼ିଶା ମଧ୍ୟ ପ୍ରଦେଶ ସଙ୍ଗେ ଓ ଦକ୍ଷିଣ ଓଡ଼ିଶା ମାଡ୍ରାସ ପ୍ରେସିଡେନ୍‌ସି ସଙ୍ଗରେ ଯୋଡ଼ି ହୋଇ ରହିଲା ।

କଳିଙ୍ଗ ଓଡ଼ିଆ ଜାତି ମରଣାନ୍ତକ ଯନ୍ତ୍ରଣା ଭୋଗିଲା । ୧୮୬୬ର ନଅଙ୍କ ଦୁର୍ଭିକ୍ଷ ଓଡ଼ିଶାକୁ ସଂପୂର୍ଣ୍ଣ ନଷ୍ଟଭ୍ରଷ୍ଟ କଲା ।

ନଅଙ୍କ ଦୁର୍ଭିକ୍ଷ ପରେ ୧୮୬୮ ମସିହାରେ ଇଂଲଣ୍ଡରେ ଥିବା ସେକ୍ରେଟାରୀ ଅଫଷ୍ଟେଟ୍‌ସ ସାର୍ ଷ୍ଟାଫୋର୍ଡ ପ୍ରଥମ କରି କହିଲେ, ଓଡ଼ିଶା ଆସାମକୁ ଗୋଟିଏ ସ୍ୱତନ୍ତ୍ର ଶାସନାଧୀନରେ ରଖାଯାଉ । ସେହି ବର୍ଷ ଭାରତର ଆଡ୍‌ଜୁଟାଣ୍ଟ ଜେନେରାଲ ମାନ୍ଦ୍ରାଜ, ମଧ୍ୟ ପ୍ରଦେଶ ଓ ବଙ୍ଗଳା ରାଜ୍ୟରୁ ସମଗ୍ର ବିଚ୍ଛିନ୍ନ ଓଡ଼ିଆ ଭାଷୀ ଅଞ୍ଚଳକୁ ମିଶାଇ ଏକ ସ୍ୱତନ୍ତ୍ର ଅଞ୍ଚଳ ବା ରାଜ୍ୟରେ ପରିଣତ କରିବା ପାଇଁ ଇଂରେଜ ସରକାରଙ୍କୁ ପ୍ରବର୍ତ୍ତାଇ ଥିଲେ ।

ଊନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟାୟରେ ବଙ୍ଗଳାର କାନ୍ତିଲାଲ ଭଟ୍ଟାଚାର୍ଯ୍ୟ, ରାଜେନ୍ଦ୍ରଲାଲ ମିତ୍ର ଓ ଭୂଦେବ ମୁଖୋପାଧ୍ୟାୟ ପ୍ରଭୃତି ନେତାମାନେ ପ୍ରଚାର କଲେ, ଓଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ, ଏହା ବଙ୍ଗଭାଷାର ଏକ ବିକୃତ ଅଂଶ । ମାତୃଭାଷାର ସୁରକ୍ଷା ପାଇଁ ଓଡ଼ିଆମାନଙ୍କ ଆନ୍ଦୋଳନ କରିବାରୁ ୧୮୭୨ ମସିହାରେ ବଙ୍ଗଳାର ତତ୍କାଳୀନ ଗଭର୍ଣ୍ଣର କାମ୍ପବେଲ୍ ସାହେବ ଓଡ଼ିଆ, ବଙ୍ଗଳା ଓ ଆସାମୀ ଭାଷାକୁ ଗୋଟିଏ ଗୋଟିଏ ସ୍ୱତନ୍ତ୍ର ଭାଷା ରୂପେ ଘୋଷଣା କଲେ ।

### ● ଉତ୍କଳ ସମ୍ମିଳନୀ

ଉତ୍କଳ ସମ୍ମିଳନୀ ମାଧ୍ୟମରେ ଦେଶ ମିଶ୍ରଣ ଆନ୍ଦୋଳନ ସଫଳ କରିବା ପାଇଁ ଆହ୍ୱାନ ଦିଆଗଲା । ୧୯୦୩ ମସିହାରେ କୁଳବୃଦ୍ଧ ମଧୁସୂଦନଙ୍କ ବାସଭବନରେ ଉତ୍କଳ ସମ୍ମିଳନୀର ପ୍ରଥମ ଘରୋଇ ସଭା ବସିଲା । ଏହାର ପ୍ରଥମ ଅଧିବେଶନ ୧୯୦୩ ମସିହା ଡିସେମ୍ବର ମାସର ୩୦ ଓ ୩୧ ତାରିଖରେ କଟକର ଇଦ୍‌ଗା ପଡ଼ିଆରେ ବସି ଦେଶ

ମିଶ୍ରଣ ପ୍ରସ୍ତାବ ଗୃହୀତ ହେଲା । ଓଡ଼ିଶାର ବିଭିନ୍ନ ସ୍ଥାନରେ ଉତ୍କଳ ସମ୍ମିଳନୀର ଅଧିବେଶନମାନ ଅନୁଷ୍ଠିତ ହୋଇ ଦେଶ ମିଶ୍ରଣ ପ୍ରସ୍ତାବକୁ ବାରମ୍ବାର ଦୋହରାଗଲା ।

## ● ପାରଳାଖେମୁଣ୍ଡିରେ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ

୧୯୧୪ ମସିହା ଡିସେମ୍ବର ୨୭ ଓ ୨୭ ତାରିଖରେ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ପାରଳାଖେମୁଣ୍ଡିରେ ବସିଲା । ସମ୍ମିଳନୀର ସଭାପତି ହେଲେ କୃଷ୍ଣଚନ୍ଦ୍ରଙ୍କ ମାମୁଁ ଜୟପୁର ରାଜା ବିକ୍ରମ ଦେବ ବର୍ମା ।

ଏହି ଅଧିବେଶନରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଦେବ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକାଠି କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ଆବଶ୍ୟକ ବୋଲି ପ୍ରସ୍ତାବ ଦେଲେ । ଏହି ସଭାରେ ସିଂହଭୂମି, ଜୟପୁର ଓ ଫୁଲଝର ପ୍ରଭୃତି ଅଞ୍ଚଳରେ ଓଡ଼ିଆ କଚେରି ଭାଷା କରିବାକୁ ଓ ଜୟପୁରକୁ ସ୍ୱତନ୍ତ୍ର ଜିଲ୍ଲା କରିବାକୁ ଦାବୀ ହୋଇଥିଲା ।

ଏହି ଅଧିବେଶନ ପାଇଁ ପାରଳା ମହାରାଜା ସେତେବେଳେ ଦଶ ହଜାର ଟଙ୍କା ଖର୍ଚ୍ଚ କରିବା ସଙ୍ଗେ ସଙ୍ଗେ ମୂଳ ଉଦ୍ଦେଶ୍ୟ ପୂରଣ ନିମନ୍ତେ ବଦ୍ଧ ପରିକର ହୋଇଥିଲେ ।

## ● ସାଇମନ କମିଶନ

୧୯୨୭ ମସିହା ନଭେମ୍ବର ମାସ ୭ ତାରିଖ ଦିନ ଭାରତର ଶାସନ ସଂସ୍କାର ନିମନ୍ତେ ସାଇମନ କମିଶନ ବସିଲା । ଭାରତର ଶାସନ ତନ୍ତ୍ରର ସଂସ୍କାର ପାଇଁ ସୁପାରିଶ କରିବା

ସାଇମନ କମିଶନରେ କୌଣସି ଭାରତୀୟ ସଭ୍ୟ ନ ଥିବାରୁ ଜାତୀୟ କଂଗ୍ରେସ ଏହି କମିଶନକୁ ସଂପୂର୍ଣ୍ଣ ବର୍ଜନ କଲା ।

ଏହା ଦେଖି ଦେଶ ମିଶ୍ରଣ ତଥା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମସ୍ୟାକୁ କମିଶନଙ୍କ ଆଗରେ ଦୃଢ଼ ଭାବରେ ଉପସ୍ଥାପନ କରିବା ନିମନ୍ତେ ପାରଳା ମହାରାଜା ମାନ୍ଦ୍ରାଜ ଯାତ୍ରା କରିଥିଲେ । ସେଠାରେ ସେ କମିଶନଙ୍କୁ ସ୍ମାରକପତ୍ର ପ୍ରଦାନ କଲେ ଓ ସାକ୍ଷ୍ୟ ଦେଲେ । ତା'ପରେ ପାଟଣାକୁ ଫେରି ଆସି ଅଣକଂଗ୍ରେସ ନେତା ବ୍ରଜସୁନ୍ଦର ଦାସଙ୍କୁ ପାଟଣାରେ ଓଡ଼ିଆଙ୍କ ତରଫରୁ ଅନୁରୂପ ସ୍ମାରକ ପତ୍ର ଓ ସାକ୍ଷ୍ୟ ଦେବା ପାଇଁ ପରାମର୍ଶ ଦେଲେ ।

ଶେଷରେ କମିଶନ ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ କରିବା ପାଇଁ ଅନୁକୂଳ ମତ ଦେଲେ । ଏ ସମ୍ପର୍କରେ ପୁଙ୍ଖାନୁପୁଙ୍ଖ ବିଚାର କରି ଆବଶ୍ୟକୀୟ ସୁପାରିଶ କରିବା ପାଇଁ ମେଜର ଆଟ୍ଲିଙ୍କ ନେତୃତ୍ୱରେ ଏକ କମିଟି ଗଠିତ ହେଲା । ଆଟ୍ଲି ତାଙ୍କ ରିପୋର୍ଟରେ ମାନ୍ଦ୍ରାଜ ଓ ମଧ୍ୟପ୍ରଦେଶ ସାଙ୍ଗରେ ସାମିଲ ହୋଇଥିବା ଓଡ଼ିଆ ଅଞ୍ଚଳକୁ, ବିହାର ଓଡ଼ିଶା ପ୍ରଦେଶର ଡିଭିଜନ ସହିତ ମିଶାଇ ଦେଇ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସପକ୍ଷରେ ମତ ଦେଲେ ।

### ❀ ପାରଳା ମହାରାଜାଙ୍କ ନେତୃତ୍ୱ

୧୯୩୦ ମସିହାରେ ଲଣ୍ଡନଠାରେ ଭାରତର ଶାସନତାନ୍ତ୍ରିକ ସମସ୍ୟା ବିଚାର ପାଇଁ ଯେଉଁ ପ୍ରଥମ ଗୋଲଟେବୁଲ୍ ବୈଠକ ବସିଲା, ସେଥିରେ ଯୋଗ ଦେବା ନିମନ୍ତେ

ବିଚ୍ଛିନ୍ନାଞ୍ଚଳ ମିଶ୍ରଣରେ ବିଶିଷ୍ଟ ନେତା ପାରଳାଖେମୁଣ୍ଡିର ମହାରାଜା ପ୍ରତିନିଧି ଭାବରେ ମନୋନୀତ ହେଲେ ।

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସପକ୍ଷରେ ସେ ଇଂରେଜ ଶାସନ କର୍ତ୍ତୃପକ୍ଷଙ୍କୁ ଏକ ସ୍ମାରକ ପତ୍ର ଦେଇଥିଲେ ।

୧୯୩୧ ମସିହାରେ ଦ୍ୱିତୀୟ ଗୋଲ ଟେବୁଲ ବୈଠକ ବସିଥିଲା । ତତ୍‌ପୂର୍ବରୁ କରାଚୀ କଂଗ୍ରେସ ଅଧିବେଶନରେ ଓଡ଼ିଶାର କଂଗ୍ରେସ ପ୍ରତିନିଧିମାନେ ଓଡ଼ିଶା ସମସ୍ୟା ସମ୍ପର୍କରେ ମହାତ୍ମା ଗାନ୍ଧୀଙ୍କ ଦୃଷ୍ଟି ଆକର୍ଷଣ କରିଥିଲେ ଏବଂ ଦ୍ୱିତୀୟ ଗୋଲଟେବୁଲ ବୈଠକରେ ଓଡ଼ିଶାର ଦାବୀ ଉପସ୍ଥାପନ କରିବା ପାଇଁ ଗାନ୍ଧିଜୀ ପ୍ରତିଶ୍ରୁତି ଦେଇଥିଲେ ।

ସେହିବର୍ଷ ଡକ୍ଟର ମହତାବଙ୍କ ସଭାପତିତ୍ୱରେ ପ୍ରଦେଶ କଂଗ୍ରେସ କମିଟି 'ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ' ପାଇଁ ଦାବୀ କରି ଏକ ପ୍ରସ୍ତାବ ଗ୍ରହଣ କରିଥିଲେ ଓ ଆବଶ୍ୟକୀୟ କାର୍ଯ୍ୟାନୁଷ୍ଠାନ ପାଇଁ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସଭାପତିତ୍ୱରେ ଏକ ସାତଜଣିଆ କମିଟି ଗଠନ କରିଥିଲେ ।

### * ଓଡ଼ନେଲ୍ କମିଟି

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କରେ ସର୍ବସମ୍ମତ ମତ ପ୍ରକାଶ ପାଇବା ଦେଖି ବ୍ରିଟିଶ ସରକାର ଓଡ଼ିଶାର ସୀମା ନିର୍ଦ୍ଧାରଣ ପାଇଁ ସାର୍ ସାମୁଏଲ ଓଡ଼ନେଲଙ୍କ ସଭାପତିତ୍ୱରେ ଏକ କମିଟି ଗଠନ କଲେ ।

ଭାରତ ସରକାର ୧୯୩୧ ମସିହା ସେପ୍ଟେମ୍ବର ୧୮ ତାରିଖରେ ଏହି କମିଟି ଗଠନ କରିଥିଲେ । କମିଟିରେ ସାର୍

ଓଡ଼ନେଲ ଟେୟ୍ଲାର୍‌ମେନ, ଅସାମର କଂଗ୍ରେସ ନେତା ତରୁଣରାମ ଫୁକନ୍ ଏବଂ ଭାରତ ଷ୍ଟେଟ୍‌ କାଉନ୍‌ସିଲ ସଭ୍ୟ ଏଚ. ଏ. ମେହେଟ୍ଟା ସଭ୍ୟ ରହିଥିଲେ । ପରେ ଓଡ଼ିଶାର ଚିଫ୍ ସେକ୍ରେଟାରୀ ବି. ସି. ମୁଖାର୍ଜୀ ଏଥିରେ ସେକ୍ରେଟାରୀ ହୋଇଥିଲେ ।

ପୁଣି ପାରଳାଖେମୁଣ୍ଡି ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ, ରାୟବାହାଦୁର ନରସିଂହ ରାଜୁ ଓ ବାହାରର ସଚ୍ଚିଦାନନ୍ଦ ସିଂହ କମିଟିର ସହଯୋଗୀ ପରାମର୍ଶଦାତା ସଦସ୍ୟ ରୂପେ ନିଆଗଲେ ।

ପାରଳାଖେମୁଣ୍ଡି ମହାରାଜାଙ୍କ ପ୍ରଗାଢ଼ ଚେଷ୍ଟା ସଚ୍ଚିଦାନନ୍ଦ ସିଂହଙ୍କ ସଦିଚ୍ଛା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶର ମୂଳଭିତ୍ତି ସ୍ଥାପନରେ ସହାୟକ ହୋଇଥିଲା ।

ଏମାନେ ଓଡ଼ନେଲ କମିଟି ସଦସ୍ୟ ଫୁକନ୍ ଓ ମେହେଟ୍ଟାଙ୍କୁ ଏ ଦିଗରେ ପ୍ରବର୍ତ୍ତାଇ ପାରିଥିଲେ ।

ଓଡ଼ନେଲ କମିଟି ୪୧୦ ଜଣ ବ୍ୟକ୍ତି ବିଶେଷ ଓ ଅନୁଷ୍ଠାନର ସାକ୍ଷ୍ୟ ଗ୍ରହଣ କରି, ସବୁ ଦିଗରୁ ବିଚାର କରି ସୁପାରିଶ କଲେ ଯେ, ଓଡ଼ିଶା ଡିଭିଜନ, ଅନୁଗୋଳ, ରାୟପୁର ଜିଲ୍ଲାର ଖଡ଼ିଆଳ ଜମିଦାରୀ, ଗଞ୍ଜାମ ଜିଲ୍ଲା ଓ ଭିଜାଗ ଏଜେନ୍‌ସିରେ ଅଧିକାଂଶ ଅଞ୍ଚଳକୁ ନେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେବ ।

କିନ୍ତୁ ନୂତନ ଓଡ଼ିଶା ପ୍ରଦେଶରୁ ମଞ୍ଜୁସା, ସିଂହଭୂମ, ଫୁଲଝର ଓ ଦକ୍ଷିଣ ପଶ୍ଚିମ, ମେଦିନୀପୁର ପ୍ରଭୃତି ଓଡ଼ିଆଭାଷୀ

ଅଞ୍ଚଳ ଅନ୍ତର୍ଭୁକ୍ତ ହୋଇଥିବା ଦେଖି ଉତ୍କଳ ସମ୍ମିଳନୀ ପାର୍ଲାକେମୁଣ୍ଡି ମହାରାଜାଙ୍କ ନେତୃତ୍ୱରେ ପ୍ରତିନିଧିମାନଙ୍କୁ ବଡ଼ଲାଟଙ୍କ ନିକଟକୁ ପଠାଇବା ପାଇଁ ପ୍ରସ୍ତାବ ଗ୍ରହଣ କରିଥିଲେ ।

❋ ଗୋଲଟେବୁଲ୍ ସମ୍ମିଳନୀ

ଏହାପରେ ଗୋଲଟେବୁଲ ସମ୍ମିଳନୀ ବିଲାତରେ ବସିଲା । ପାରଳା ମହାରାଜା ସେଠାକୁ ଭାରତ ସରକାରଙ୍କ ପ୍ରତିନିଧି ରୂପେ ଯାଇଥିଲେ । ସେ ଉତ୍କଳ ସମ୍ମିଳନୀରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କରେ ପ୍ରଗାଢ଼ ଉଦ୍ୟମ କରିଥିଲେ ।

ତୃତୀୟ ଗୋଲଟେବୁଲ ସମ୍ମିଳନୀ ପରେ ଭାରତ ମନ୍ତ୍ରୀ ସାର୍ ସାମୁଏଲ୍ ହୋର୍ ୧୯୩୨ ମସିହା ଡିସେମ୍ବର ମାସ ୨୪ ତାରିଖରେ ଘୋଷଣା କଲେ ଯେ, ଭାରତର ଶାସନ ତାନ୍ତ୍ରିକ ବ୍ୟବସ୍ଥାରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହେବ ।

୧୯୩୩ ମସିହା ମାର୍ଚ୍ଚ ମାସରେ ପ୍ରକାଶିତ ଶ୍ୱେତ ପତ୍ରରେ କୁହାଗଲା ଯେ, ଭାରତର ୧୦ଟି ପ୍ରଦେଶ ଭଳି ଓଡ଼ିଶା ଗୋଟିଏ ନୂଆ ଶାସିତ ପ୍ରଦେଶ ରୂପେ ଗଠିତ ହେବ ।

ଏହି ଶ୍ୱେତ ପତ୍ରରେ ସ୍ୱତନ୍ତ୍ର ଓଡ଼ିଶାର ଯେଉଁ ସୀମା ନିର୍ଦ୍ଧାରଣ କରାଗଲା, ତହିଁରେ ଓଡ଼ିଆମାନେ କ୍ଷୁବ୍ଧ ହୋଇ ପ୍ରତିବାଦ କଲେ ।

### ❋ ଚୂଡ଼ାନ୍ତ ନିଷ୍ପତ୍ତି

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶରେ ସୀମା ନିର୍ଦ୍ଧାରଣ ନିମନ୍ତେ ପୁଣି ଏକ ଷାଅଁଜଣିଆ ଜଏଣ୍ଟ ପାର୍ଲିଆମେଣ୍ଟାରୀ କମିଟି ଉପରେ ଦାୟିତ୍ୱ ଦିଆଗଲା ।

ପାରଳାଖେମୁଣ୍ଡି ମହାରାଜା ଶ୍ୱେତପତ୍ର ପ୍ରକାଶରେ ନିରାଶ ନ ହୋଇ ଗୋଟିଏ ସାତଜଣିଆ କମିଟିର ନେତୃତ୍ୱ ନେଇ ଲଣ୍ଡନ ଯାତ୍ରା କଲେ । ସେ ୧୯୩୩ ମସିହା ଜୁଲାଇ ମାସ ୫ ତାରିଖ ଦିନ ଭାରତ ପ୍ରଧାନମନ୍ତ୍ରୀଙ୍କୁ ସାକ୍ଷାତ କରି ନିଜର ମତାମତ ଜଣାଇଲେ । କିନ୍ତୁ ଇତିମଧ୍ୟରେ ତେଲୁଗୁ ପ୍ରତିନିଧିମାନେ ଶ୍ୱେତପତ୍ରର ସୀମାକୁ ପରିବର୍ତ୍ତନ ନ କରିବା ପାଇଁ ଜଣାଇଲେ । ଫଳରେ ଇଂରେଜ ସରକାର ପୁଣି ଥରେ ଭାରତ ସରକାରଙ୍କ ମତ ଲୋଡ଼ିଲେ ।

ଏଭଳି ପରିସ୍ଥିତିରେ ପଡ଼ି ପାରଳା ଖେମୁଣ୍ଡି ମହାରାଜା ତାଙ୍କ ରାଜ୍ୟକୁ ଭାଗ ଭାଗ କରିଦେବା ନିଷ୍ପତ୍ତି ଗ୍ରହଣ କଲେ । ତାଙ୍କର ନିଷ୍ପତ୍ତି ଫଳରେ ସୀମା ସମସ୍ୟାର ସମାଧାନ ହେଲା ।

ଜଏଣ୍ଟ ପାର୍ଲିଆମେଣ୍ଟାରି କମିଟି ଅବଶେଷରେ ୧୯୩୪ ମସିହା ନଭେମ୍ବର ମାସରେ ସେମାନଙ୍କ ରିପୋର୍ଟ ଦେଲେ । ଶ୍ୱେତ ପତ୍ରରେ ଉଲ୍ଲେଖ ଥିବା ଅଞ୍ଚଳ ସହିତ ୧୯୩୨ ମସିହାର ସୀମା ନିର୍ଦ୍ଧାରଣ କମିଟି ନିଷ୍ପତ୍ତି କରିଥିବା ଜୟପୁର ଜମିଦାରୀ, ପାରଳା ଖେମୁଣ୍ଡି ସହର ସମେତ ଏହି ଜମିଦାରୀର ଏକ ଅଂଶ ନୂତନ ଓଡ଼ିଶା ପ୍ରଦେଶ ସଙ୍ଗରେ ଯୋଗ କରିବା ପାଇଁ ଜଏଣ୍ଟ ପାର୍ଲିଆମେଣ୍ଟାରି କମିଟି ସୁପାରିଶ କଲେ ।

୧୯୩୬ ମସିହା ନଭେମ୍ବର ୨୭ ତାରିଖ ଦିନ ନୂତନ ପ୍ରଦେଶ ସଙ୍ଗରେ ଶ୍ୱେତ ପତ୍ରରୁ ବାଦ ପାଇଥିବା ପାରଳା ଖେମୁଣ୍ଡି ଓ ଜୟପୁର ଜମିଦାରୀ ଅଞ୍ଚଳଗୁଡ଼ିକ ପୁଣି ଓଡ଼ିଶାରେ ମିଶିବା ବିଷୟ, ଯୁଗ୍ମ ପାର୍ଲିଆମେଣ୍ଟାରୀ କମିଟି ଦ୍ୱାରା ସୁପାରିଶ କରାଯାଇଥିବା ବିଷୟ କମନ୍ସ ସାଧାରଣ ସଭା ଗୃହରେ ଅନୁମୋଦିତ ହେଲା ।

ତଦନୁଯାୟୀ ଭାରତ ସରକାରଙ୍କ ବିଲ୍ ଭିତରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ବ୍ୟବସ୍ଥା ସବୁ ତାଲିକାଭୁକ୍ତ କରାଗଲା ଓ ୧୯୩୬ ମସିହା ଏପ୍ରିଲ ମାସର ପହିଲା ତାରିଖ ଦିନ ଓଡ଼ିଶା ପ୍ରଦେଶ ଗଠନ କରାଗଲା ।

### ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ

୧୯୩୬ ମସିହା ଅପ୍ରେଲ ପହିଲା ତାରିଖ ଦିନ ନୂତନ ସୀମା ସହ ନୂତନ ଓଡ଼ିଶା ପ୍ରଦେଶ ଉଦ୍‌ଘାଟନ ଉତ୍ସବ ପାଳନ କରାଗଲା । ସାର୍ ଜନ୍ ଅଷ୍ଟିନ ହବାକ୍ ମହୋଦୟ ନୂତନ ଓଡ଼ିଶା ପ୍ରଦେଶର ପ୍ରଥମ ଲାଟ୍ ହେଲେ ।

### ସ୍ୱତନ୍ତ୍ର ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ
### ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ

୧୯୩୭ ମସିହାରେ ପ୍ରଥମ ଲୋକ ପ୍ରତିନିଧି ସରକାର ଗଢ଼ାଯିବାବେଳେ ପ୍ରଥମ ତିନିମାସ ପାଇଁ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବ ପ୍ରଥମ ପ୍ରଧାନମନ୍ତ୍ରୀ ହେଲେ । ସେତେବେଳେ ପ୍ରଦେଶର ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା ।

ସେତେବେଳେ ବିଧାନ ସଭା ସଂଖ୍ୟା ଥିଲା ୬୦ । ଗଡ଼ଜାତ ଗୁଡ଼ିକ ସେତେବେଳ ପର୍ଯ୍ୟନ୍ତ ଓଡ଼ିଶାରେ ମିଳିତ ଥିଲେ । ଭୋଟ ଲଢ଼େଇ ହୋଇଥିବା ୬୦ଟି ସ୍ଥାନରୁ ୩୬ଟି ସ୍ଥାନ କଂଗ୍ରେସ ପାଇଥିଲା । ମିଳିତ ଦଳ ଭାବରେ ଯେଉଁ ବିରୋଧୀ ଦଳ ଗଠିତ ହୋଇଥିଲା ସେମାନେ ୭ଟି ସ୍ଥାନ, ଜାତୀୟ ଦଳ ୪ଟି ସ୍ଥାନ, ନିର୍ଦ୍ଦଳୀୟ ସ୍ୱାଧୀନ ଦଳ ୧୦ଟି ସ୍ଥାନ ପାଇଥିଲେ । କଂଗ୍ରେସ ଦଳ ସଂଖ୍ୟା ଗରିଷ୍ଠତା ହାସଲ କରିଥିଲେ ହେଁ ନିଖିଳ ଭାରତ କଂଗ୍ରେସ କମିଟିର ପରାମର୍ଶ ଅନୁଯାୟୀ ମନ୍ତ୍ରୀମଣ୍ଡଳ ଗଠନ କଲେ ନାହିଁ । ଫଳରେ ଲାଟ ସାହେବ ଦଳର ନେତା ପାରଳା ଖେମୁଣ୍ଡି ମହାରାଜାଙ୍କୁ ମନ୍ତ୍ରୀ ପରିଷଦ ଗଢ଼ିବାକୁ ନିମନ୍ତ୍ରଣ କରିଥିଲେ ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବଙ୍କ ନେତୃତ୍ୱରେ ୧୯୩୭ ମସିହା ଅପ୍ରେଲ ପହିଲା ତାରିଖରେ ୩ ଜଣଙ୍କୁ ନେଇ ମନ୍ତ୍ରୀ ପରିଷଦ ଗଢ଼ା ହେଲା । ଏଥିରେ ମନ୍ଧାତା ଗୋରାଚନ୍ଦ୍ର ପଟ୍ଟନାଏକ ରାଜସ୍ୱ ଓ ମୌଲାନା ମହମ୍ମଦ ଲତିଫୁର ରହମନ ଶିକ୍ଷା ମନ୍ତ୍ରୀ ରହିଲେ ।

ସ୍ୱତନ୍ତ୍ର ଉତ୍କଳ ଆନ୍ଦୋଳନର ବସ୍ତୁ ଘଟଣା ପୂର୍ଣ୍ଣ ଇତିହାସରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଉଲ୍ଲେଖନୀୟ ଅବଦାନ ଭୁଲିବାର ନୁହେଁ ।

### ଲଣ୍ଡନର ପ୍ରଥମ ଗୋଲଟେବୁଲ ବୈଠକରେ ପାରଳା ମହାରାଜାଙ୍କ ଅଭିଭାଷଣ

ସାଇମନ୍ କମିଶନ ୧୯୩୦ ମସିହା ସେପ୍ଟେମ୍ବର ୨୦ ତାରିଖରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଓ ତାର ସୀମା

ନିର୍ଦ୍ଧାରଣ ପାଇଁ ବାଉଣ୍ଡରି କମିଟି ଓ ସୀମା କମିଶନ ବସାଇବା ପାଇଁ ଇଂରେଜ ସରକାରଙ୍କୁ ସୁପାରିଶ କଲେ ।

ସାଇମନ କମିଶନଙ୍କ ଅନୁକୂଳ ରିପୋର୍ଟ ପରେ ୧୯୩୧ ମସିହା ଜାନୁଆରୀ ୧୬ ତାରିଖ ଦିନ ଭାରତରେ ଶାସନ ସଂସ୍କାର ଲାଗୁ କରିବା ପାଇଁ ପ୍ରଥମ ଗୋଲ ଟେବୁଲ ବୈଠକ ଲଣ୍ଡନ ସହରରେ ବସିଲା ।

ପ୍ରଥମ ଗୋଲ୍ ଟେବୁଲ୍ ବୈଠକରେ ଓଡ଼ିଆମାନଙ୍କ ପକ୍ଷରୁ ତତ୍କାଳୀନ ବିହାର-ଓଡ଼ିଶାର ସରକାର ଶ୍ରୀକୃଷ୍ଣଚନ୍ଦ୍ର ଗଜପତିଙ୍କୁ ପ୍ରତିନିଧି ଭାବରେ ଯୋଗ ଦେବାକୁ ମନୋନୀତ କରିଲେ ।

ସେଠାରେ ପାରଳା ମହାରାଜା ଦେଶ ମିଶ୍ରଣ ଓ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସଂପର୍କରେ ଦୃଢ଼ଦାବୀ ଉପସ୍ଥାପନ କରି ସ୍ମାରକ ପତ୍ର ଦେଲେ । ଗୋଲ ଟେବୁଲ ବୈଠକରେ ସେ ଯେଉଁ ସାରଗର୍ଭକ ଭାଷଣ ପ୍ରଦାନ କରିଥିଲେ, ତାର କିଛିଅଂଶ ନିମ୍ନରେ ପ୍ରଦତ୍ତ ହେଲା ।

"କୋଟିଏ ଓଡ଼ିଆ ଲୋକଙ୍କ ପକ୍ଷରୁ ମୁଁ ସେମାନଙ୍କ ବନ୍ଧୁ-ହୀନର ଗୁହାରି ଶୁଣାଇବାକୁ ଛିଡ଼ା ହୋଇଛି ।

ମୁଁ ଯେଉଁ ସ୍ମାରକ ପତ୍ର ଆପଣମାନଙ୍କୁ ଦେଇଛି, ସେଥିରୁ ଓଡ଼ିଆ ମାନଙ୍କ ସମସ୍ୟାର ବିଶେଷ ବିବରଣୀ ଆପଣମାନେ ବୁଝିପାରିବେ ।

ବ୍ରିଟିଶ ସରକାରଙ୍କ ରାଜଧାନୀର ବହୁ ଦୂରରେ ଓଡ଼ିଆ ମାନେ ବିଚ୍ଛିନ୍ନ ହୋଇ ପଡ଼ିଥିବାରୁ, ଏମାନେ ପ୍ରତ୍ୟେକ ପ୍ରଦେଶରେ ବହୁ ଜନ ସଂଖ୍ୟା ଭିତରେ ଲିଭି ଯାଉଛନ୍ତି ।

ଆପଣମାନେ ଓଡ଼ିଆମାନଙ୍କର ଏହି ଆବେଦନ ପ୍ରତି ସହାନୁଭୂତି ଦେଖାଇବେ । ଆମେ ଚାହୁଁ, ଭାଷା ଓ ଜାତି ହିସାବରେ ପ୍ରଦେଶ ଗଠନ । ଏହି ଭାବରେ ଓଡ଼ିଆମାନେ ମିଳିତ ହେଲେ ଭବିଷ୍ୟତ ପୁନର୍ଗଠନ ଆଇନରେ ବିଶେଷ ଭାବରେ ଉପକାର ପାଇ ପାରିବେ ।

କୋଟିଏ ଓଡ଼ିଆଙ୍କ ପାଇଁ ସ୍ୱତନ୍ତ୍ର ପ୍ରଦେଶ ନଦେଇ ଆପଣମାନେ ଭାରତରେ ନୂତନ ଶାସନ ସଂସ୍କାର ଆଇନ ପ୍ରବର୍ତ୍ତନ କରି ଯଶସ୍ୱୀ ହୋଇ ପାରିବେ ନାହିଁ । ମୁଁ ଆଶା କରେ, ଆପଣମାନେ ସମସ୍ତେ ମୋ କଥା ଉପଲବ୍ଧି କରି ସାରିଛନ୍ତି ।

ଆର୍ଥିକ ଅବସ୍ଥା ସ୍ୱତନ୍ତ୍ର ପ୍ରଦେଶ ଗଠନରେ ଅନ୍ତରାୟ ହୋଇପାରେ ବୋଲି ଆପଣମାନେ ଭାବୁଥିବେ । କିନ୍ତୁ ମୁଁ କହେ, ଏହା କେବେହେଲେ ପ୍ରତିବନ୍ଧକ ସୃଷ୍ଟି କରିବ ନାହିଁ । 'ଯେତେ ଚୂନାକୁ ସେତିକି ପିଠା' ନ୍ୟାୟରେ ଓଡ଼ିଶା ପ୍ରଦେଶ ଗଠନ ପାଇଁ ଆଉ ଅସୁବିଧା କିଛି ହୋଇ ନ ପାରେ । ଆସାମ ଓ ବିହାର ପ୍ରଦେଶମାନ ଗଠନ ହେଲାବେଳେ ଭାରତ ସରକାର ଯେପରି ଉଦାରତା ଦେଖାଇଥିଲେ, ଓଡ଼ିଶା ପ୍ରଦେଶ ଗଠନରେ ମଧ୍ୟ ସରକାର ସେହିପରି ଉଦାରତା ଦେଖାଇବେ ବୋଲି ମୋର ଆଶା । × × ×

ଓଡ଼ିଆ ମାନଙ୍କର ସମସ୍ୟା ସଂପର୍କରେ ଏଠାରେ ଏକୁଟିଆ ହୋଇ ମୁଁ ଯାହା କହିଛି, ସେଥିପ୍ରତି ସମସ୍ତେ ଦୃଷ୍ଟି ଦେବେ ବୋଲି ଆଶା କରେ

(ଡ଼ଃ ହରିହର କାନୁନ୍‌ଗୋଙ୍କ ଅନୁବାଦ)

ଉପସଂହାର

୧୯୬୫ ମସିହା ମେ ମାସ ୨୫ ତାରିଖରେ ପାରଳାର ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବଙ୍କର ମହାପ୍ରୟାଣ ଘଟିଲା । ସେ ପାରଳା ଶ୍ରୀମୂର୍ତ୍ତି ରାଜପ୍ରାସାଦରେ ପୂଜା ଅର୍ଚ୍ଚନା ଶେଷ କରିବା ପରେ ହଠାତ୍ ହୃତ୍‌ପିଣ୍ଡ କ୍ରିୟା ଲୋପ ହେବା ଫଳରେ ପରଲୋକ ଗମନ କଲେ ।

ଏହି ଦାରୁଣ ସମ୍ବାଦ ଓଡ଼ିଶା ସମେତ ଭାରତର ବହୁ ଲୋକଙ୍କୁ ଦୁଃଖାଭିଭୂତ କଲା । କାରଣ ମହାରାଜା ଏକାଧାରରେ ସ୍ୱଦେଶ ପ୍ରେମୀ, ସ୍ୱାଭିମାନୀ, ଆଦର୍ଶ ପୁରୁଷ ଥିଲେ । ସେ ଜଣେ ପ୍ରଜା ହିତୈଷୀ ରାଜା ଭାବରେ ସୁପରିଚିତ ଥିଲେ । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ତାଙ୍କ ନିଷ୍ଠା ଓ ତ୍ୟାଗର ତୁଳନା ନାହିଁ କହିଲେ ଅତ୍ୟୁକ୍ତି ହେବନାହିଁ ।

ସମଗ୍ର ଓଡ଼ିଆ ଭାଷା ଭାଷୀ ଅଞ୍ଚଳର ଏକତ୍ରୀକରଣ ତାଙ୍କର ସ୍ୱପ୍ନ ଥିଲା । ସେ ସ୍ୱପ୍ନ ଆଂଶିକ ଭାବରେ ସଫଳ ହୋଇଛି ମାତ୍ର । ଓଡ଼ିଶା ସଙ୍ଗରେ ଏବେ ମଧ୍ୟ ସିଂହଭୂମି, ଫୁଲଝର, ବନ୍ଧା ନୂଆଗଡ଼ଠାରୁ ଆରମ୍ଭ କରି ମଞ୍ଜୁଷା, ଟିକାଲି, ତର୍ଲା ପ୍ରଭୃତି ଅଞ୍ଚଳ ମିଶି ନାହିଁ । ମେଦିନୀପୁରର ଓଡ଼ିଆ ପୀଠ ଗୋପୀବଲ୍ଲଭପୁର ଏବେ ମଧ୍ୟ ବାହାରେ ରହିଛି । ପରନ୍ତୁ ଏଥିର ବିଷୟ, ଓଡ଼ିଶାର ଅବିଚ୍ଛେଦ୍ୟ ଅଙ୍ଗ ସରେଇକଳା ଖରସୁଆଁକୁ ସ୍ୱାଧୀନତା ପରେ ଓଡ଼ିଶାରୁ ଅଲଗା କରି କାଢ଼ି ନିଆଯାଇ ବିହାର ସଙ୍ଗରେ ଯୋଡ଼ି ଦିଆଯାଇଛି ।

ଅପ୍ରେଲ ପହିଲା ତାରିଖ ଆସିଲେ ଓଡ଼ିଶା ପ୍ରତିବର୍ଷ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଦେବଙ୍କୁ ସ୍ମରଣ କରି ଆସୁଛି । କିନ୍ତୁ ଓଡିଶା ବାହାରେ ଥିବା ବିଚ୍ଛିନ୍ନ ଓଡିଆ ଭାଷା ଭାଷୀମାନେ ସର୍ବଦା ପାରଳା ମହାରାଜାଙ୍କୁ ସ୍ମରଣ କରୁଛନ୍ତି ।